# ବାଈ ନାଚ ।

—○✻○—

ଜଣେ ବାଗ୍ମୀଙ୍କର
ପ୍ରଣୀତ ।



CUTTACK.
Printed at the Arunodoy Press.
1897.

ମୂଲ୍ୟ ଦେଢ଼ପଇସା ।

# ବାଈ ନାଚ ।

ରାଗ ଶଙ୍କରାଭରଣ ।

—:*:—

ଚଉଧୁରୀ ନ-ନା ରାୟ ବଡ ଜମିଦାର ।
ସୁବିଖ୍ୟାତ ଜଣେ ଧନୀ କଟକ ନଗର ।
ବାବୁ ଈଶ୍ୱର ଚନ୍ଦ୍ରବେ ।
ବନାରସକୁ ପେଷିଲେ ସମ୍ବାଦ ତାରରେ । ୧ ।
ଗତ ଦୋଲପୂର୍ଣ୍ଣିମାରେ ଆମୋଦ ମନାସି ।
ନୂତନ ବିଷୟେ ବାବୁ ସଦା ଅଭିଲାଷୀ ।
ନାଚ କାଶୀରୁ ଆଣାଇ ।
ଦେଖାଇବେ ସହରବାସୀଙ୍କ ପ୍ରୀତି ପାଇଁ । ୨ ।
ବିଶେଷ କାରଣହେତୁ ଆସି ନ ପାରିଲା ।
ଦୋଲ ପରେ ଆସିବାକୁ ଅଙ୍ଗୀକାର କଲା ।
କାଶୀବାଈ ସୁକେଶିନୀ ।
ମାନିନୀ ଭାମିନୀ ତାନୀ ଧନୀ ସୁଦନ୍ତିନୀ । ୩ ।

ଜମିଲିଲେ ଚଉଧୁରୀ ଓଡ଼ିଆ ବଙ୍ଗାଳୀ ।
ଫିରଙ୍ଗୀ ପଠାଣ ଅବ ମାଲବାସୀ ଜନ ।
ଶତ ଶତ ଭଦ୍ରଜନ ।
ଘନଘନ ନୃତ୍ୟ ଗୀତ ଦର୍ଶନ ଶ୍ରବଣ । ୪ ।
ପ୍ରଚ୍ଛଦନ ନବ୍ୟସଭ୍ୟ ପ୍ରଥା ଅନୁସର ।
ସୋଡ଼ା ଲେମନେଡ଼ ଶ୍ଲିଲ ବଲ୍ଲଶାପୃ ବାରି ।
ଭରଦେଲେ ଏକଘରେ ।
ପିଇବେ ବାବୁଏ ବାଞ୍ଛ ଯେ ଯାହା ମତରେ । ୫ ।
ଚୂଡ଼ାନ୍ତ ଦିବସ ପାଁଇ ରହିଲା ଭୋଜନ ।
ଖାଇବେ ପୂରିଇ ପେଟ ହୋଇ ହୃଷ୍ଟମନ ।
ହେଲା ଏମନ୍ତ ବିଧାନ ।
ଉତ୍କଳ ସେଥିରେ ଜଣେ କଲେ ଆୟୋଜନ । ୬ ।
ହୋଇଲା ସେ ଦରବୁଢ଼ା ଉତ୍କଳ କରତା ।
ହାତ ମୋଡ଼ି ଦେଖାଇଲା ବହୁତ ଭଦ୍ରତା । ।
ପ୍ରଥା ବାହୁଁ ଏ ଅଇଲା ।
ହାତମୋଡ଼ା ଛିଙ୍କାଣିରେ ସଭ୍ୟତା ଉଠିଲା । ୭ ।

(     )

ଜାମାତା-ଭୂଷଣ ଗୋଟି ପଛେ ପଛେ ଥାଇ ।
ଇଙ୍ଗିତରେ କହୁଥିଲେ ବନ୍ଧୁଙ୍କୁ ମନାଇ ।
ଆସ ବସ ଏହିଠାରେ ।
ଭଦ୍ରତା ଦୃଷ୍ଟିରେ କ୍ରୋଧ ନ କରିବ କେବେ ।୮।
ଦେବଦାରୁପଞ୍ଝ୍ମା ସଜ୍ଜିତ ଦ୍ୱାର ।
ଶୁଭ୍ରଚନ୍ଦ୍ରାତପ ତଳେ ଝାଡ଼ ଲଣ୍ଠଣ ।
ଧାଡ଼ି ଧାଡ଼ି ଚୌକି ଆସନ ।
ଦେଖଣାହାରିଙ୍କ ପାଇଁ ଯୋଜନା ବିଧାନ । ୯ ।
ବଙ୍କ ଗେଣ୍ଡାଳିଆ ପଗ ବସିଣ ଧାଡ଼ିରେ ।
ବାବୁଏ ଦେଖିଲେ ନାଚ ଏକାଗ୍ରଚିତ୍ତରେ ।
ବାଈ ସୁବେଶ ଭୂଷିତା ।
ଠକ ଠକ ଜକ ଜକ ପାଗପ୍ର ମଣ୍ଡିତା । ୧୦ ।
ଶୋଭାଙ୍ଗୀ ହେମାଙ୍ଗୀ ଧନୀ କେତକୀବରଣୀ ।
ମଧୁରହାସିନୀ ଶୁଭ୍ର ଗୋଲାପବଦନୀ ।
ଉଭା ସଭା ମଣ୍ଡପରେ ।
ନାଚ ଆରମ୍ଭିଲେ କେଡ଼େ ମୋହନ ଭଙ୍ଗୀରେ ।୧୧।

ଝାଣି ବଙ୍କାଚୂଣୀ ବେଣୀ ବାନ୍ଧିଥିଲ୍ଲ ବାଳୀ
ବାଣୀ ତା ହରଉଥିଲ୍ଲ କୋଇଲ-ଦାମିନୀ
ଠାଣୀ ଥିଲ୍ଲ ଭ୍ରୂଲତାରେ ।
ଯାଣି ଏ ରଙ୍ଗରେ ଥାପୁଥିଲ୍ଲ ଚରୁକରେ । ୧୨ ।
ବେଣୀଟି ତାହାର ପ୍ରୀତି-ବାଣିଜ୍ୟ ପସରା ।
ରଚି କବା ଯାଉଥିଲ୍ଲ ଧରିବାକୁ ପରା ।
ରସିକଙ୍କ କାମ-ମାନ୍ଥି ।
ଠୁଳ ହୋଇଥିବା ଜନମାନଙ୍କରୁ ବାନ୍ଥି । ୧୩ ।
ସେ ଗୋପୀ ନୟନ କୁସୀମୂନଠାରୁ ଯଡ଼ୁ ।
ଜଣି ଯାଇଥିଲ୍ଲ ଅହ୍ନା ତା କଣ୍ଠୀ ଡ଼ମ୍ବରୁ ।
ରୁଣଝୁଣ ତା ନୂପୁର ।
ଶ୍ରବଣ କୁହରେ ବାଜୁଥିଲ୍ଲ କ ମଧୁର । ୧୪ ।
ଥାପୁଥିଲ୍ଲ ଦୃମି୨ ଯେତେବେଳେ ଗୋପୀ ।
ନାଶୁଥିଲ୍ଲ ଧୈର୍ଯ୍ୟମାନ ନୃତ୍ୟ-ଭଙ୍ଗୀ କରି ।
ଭାସୁଥିବା ପଦ୍ମପରି ।
ହସି ଦେଉଥିଲ୍ଲ ମନେ କି ରଙ୍ଗେ ଚତୁରୀ ।୧୫।

ହସ ଦେଖି ବଶ ହେଲେ ରସିକ ପୁରୁଷେ ।
କସମସ କଲା ଦେହ ପରଶିବା ଆଶେ ।
ଅହ୍ନା ହସ୍ୟ ହଉମ୍ନା ।
କପପାଇଁ ଆମୋଦରେ ଲୋଟିଲା ଯନ୍ତ୍ରଣା । ୧୬ ।
ରମ୍ଭା ଉର୍ବଶୀ କବା ଅସିଲା ଓହ୍ଲାଇ ।
ରମ୍ଭା-ଉରୁ ଦେଖାଇଲା ନାଚ ଥେଇ ଥେଇ ।
ମନ ନେଲା ସେ ଆକର୍ଷି ।
କ ଛଟାରେ ପକାଇଣ ଅନଙ୍ଗ ବଡଶୀ । ୧୭ ।
ଠାର ଦେଉଥିଲା ଯେତେବେଳେ ସେ କାମିନୀ ।
ସାର ଦେଉଥିଲା ଜ୍ଞାନ ସମସ୍ତ ରଜନୀ ।
ଧାର ଯାଉଥିଲା ଦେହ ।
ମାର ନେବା ପାଇଁ ମଚ୍ଛା କେହୁ ଲହ ଲହ ।୧୮।
ହୁରୁଁ ଯାଇ ପାଶେ ବସୁଅଛି କେ ରସିକ ।
ହାଆଁ ମୁଖେ ଗୁହଁ ଅଛି କେହୁ ଠେକ ବେକ ।
ମଶା ମାଛରେ କ ଘୀଡ ।
ଏକମନେ ଦେଖୁଅଛନ୍ତି ସର୍ବେ ନୃତ୍ୟଗୀତ । ୧୯ ।

ଗେ

ଟେଙ୍କ୍ରୁ ଭାଙ୍ଗି ଗଲେ ତାକୁ ଧରନେବ ପରି ।
ଦର୍ପଣ ସ୍ୱମ୍ପରସ୍ପେ ନ ଦଅଇ ଧରି ।
ବାଈ କାଚ ପର ସ୍ୱଚ୍ଛ ।
କ ସୁନ୍ଦର ଦଶୁଥିଲା ଗଲା ମୋଡଗୃହ । ୧୦ ।
ସନ୍ଧିରେ ଦେଖଣାଦ୍ୱାର ବହୁଛନ୍ତି ଭରି ।
ବୁଣିଲେ ମନ୍ଦଶେଉଳ ରହିବ ଉପର ।
ନାହିଁ ପିମ୍ପୁଡ଼ିର ବାଟ ।
ପବନ ଆସିବାପାଇଁ ନ ପାଉଛି ଫାଟ । ୧୧ ।
ରସତରଙ୍ଗିଣୀ ଗୃହୁ ଦ୍ୱାପିମୀ ଛିଟକ ।
ଦେଖି ମରଗଲ୍ଲା କେତେ ଲୋକଙ୍କ ମଟକ ।
ନ-ନା ଏକପାଶେ ବସି ।
କାମବେଶେ ଦେଉଥିଲେ ଦରଦର ହସି । ୧୨ ।
ଭଦ୍ରା ରକ୍ଷଣପାଇଁ ବୁଲି ଏଣେ ତେଣେ ।
ପ୍ରିୟନାଥ ଦେଖୁଛନ୍ତି କେ ରହିଲା କେଣେ ।
ତହିଁ ଥିଲା ଘଟଣେ ନବ ।
ମାଡ଼ୀ ଦ୍ୱାଡ଼ୀ ପାଉଁଶ ଦେଇନଲା ଭାଧା ଭାଧା । ୧୩ ।

କଥାଅଛନ୍ତି ତଥା ଜାଣେ କି ପଇଡ଼ପାଣି ।
ପିଇକର ବୋଲେ ନଷ୍ଟେ ଏ ଥିଉଚ୍ଛୋରଣି ।
ପସାଖେଳେ ସେହ୍ରପର ।
ପଢ଼ିଲେ ବୋଲଇ ଦଶ ଉତ୍ତରେ ବର୍ତ୍ତୁର ।୧୪।
ହୃଦବନ ଭାମସାରେ ସମସ୍ତେ ସନ୍ତୋଷ ।
ପୂର୍ଣ୍ଣିଇଲେ ଖାଇ ପେଟ ଭୃଞ୍ଜାଯୁ ଦବସ ।
କବ ବସିଥିଲା କାହିଁ ।
ଭୁଜ ଦନ୍ତାଉ ଫେରନ୍ତି କ ମନକୁ ବୁଝାଇ ।୧୫।
ଅକ୍ଷୌଣ କାକ୍ଷୌଣ କେବେ ନ ପାରନ୍ତି ସହି ।
ପ୍ରକାଶିଲ୍ଲ ଲେଖି କାବ୍ୟ କ୍ରୋଧମନେ ବହି ।
ଭଲ୍ଲ ଥାନ୍ତି ବେଳେ ଠାଉ ।
ସବୁଜ-ଗୃହରେ ଦେଇ ଥାନ୍ତି ପେଗ-କାଉ ।୧୬।
ଥଣ୍ଡା ହୋଇଥାନ୍ତା ତବ ଲେଖନୀ ରସନା ।
ମଣ୍ଡା ଖାଇ କରଥାନ୍ତି ପ୍ରକୃତ ବର୍ଣ୍ଣନା ।
ପଣ୍ଡା ପ୍ରିୟ ଥିଲେ ତହିଁ ।
ମନକଥା ନ ଫେଇଲ ତାହାଙ୍କୁ କପାଇଁ ।୧୭।

ଖାଇ ନ ପାରିଲ ଯେବେ କଣ୍ଟି କବ୍ବର ।
ଲଣ୍ଡ ଭଣ୍ଡ ହୋଇ ସଗେ କପାଇଁ ପ୍ରଶ୍ନର ।
କାହୁଁ ଢେଲୁର ଉଠାଇ ।
ଉଗାରିଲ ଏବେ ବସ୍ତୁ ଶମୁଖ ହଲାଇ ।୨୮।
ଅପ୍ରିୟ କେମନ୍ତେ ପ୍ରିୟ, ଏ ଯୁକ୍ତି ବିଷମ ।
ବୋଲିବାର ଯେମନ୍ତ କି ସୁମଧୁର ଜମ ।
କଷା ଅଥବା ଅମୃତ ।
କି ଉପମା ଦେବ୍ବ, ତତ୍ ଅଲ୍ପ କି ବହୁତ ।୨୯।
କଷ ହେଲ ନାରଖାର ? ଲେଖିଛ ଦେ ଦାରୁ ।
ତୁମ୍ଭ ପ୍ରତ ସିନା, ଯେଣୁ ନ ପାଇଲ କାରୁ ।
ଆଉ ତ ହେବ ଭାଳଲେ ।
କହ ଲେଖି ନାହିଁ ପୁଣ ସେ ଯୋଜା କପାଳେ ।୩୦।
ଗରବ ଭାଗ୍ୟରେ ଯଦି ଥାନ୍ତା ସବୁ ସୁଖ ।
ତୁମ୍ଭ ଆମ୍ଭ ମିଶିବାରେ ଥାନ୍ତା କସ ଦୁଃଖ ।
ଦୁହେଁ ଏକାସନେ ବସି ।
ଭୁଞ୍ଜନ୍ତୁ କାଲେୟା କୋପ୍ରା ଖାଗ କାଞ୍ଜି ମିଶି ।୩୧।

ପୁଣିପଢ଼ି ହାଲୁଟିଛ ବୟସର କଥା ।
ଯେତେ ଇଚ୍ଛା ତେତେ ହେଲେ କପାଁ ମଥାବ୍ୟଥା
କମ ଅଛନ୍ତି କଜାରେ ।
ଲୋଡଲେ ଯାଇବ ଭାଇ ଅଳପ ଚେଷ୍ଟାରେ ।୩୨।
ନାହିଁ ଜ୍ଞାବବାର କଛି ସୁଶିକ୍ଷା ସକାଶ ।
ଜାଣିବାରେ ହୋଇଅଛି ବଶେଷ ପ୍ରକାଶ ।
ମୂର୍ଖ କେବେ କ ଜାଣିଛି ।
ଦଶଜଣ ସଙ୍ଗ ରଙ୍ଗେ କେଉଁ ସୁଖ ଅଛି । ୩୩ ।
ଧନୀ ଯଦ ନ କରବେ ଏମନ୍ତ ପ୍ରକାର ।
ଗରବେ ବଞ୍ଚିତ ହେବେ ଅନନ୍ଦରୁ ତର ।
ଧନ ମନ ଥିଲେ ସିନା ।
ସଂସାର ସୁଖକୁ କେହ ନ ପାଇ ବଞ୍ଚନା । ୩୪ ।
ସୁଶିକ୍ଷା ହୁଅଇ ପଢ଼ି ବଦେଶ ଭ୍ରମଣେ ।
ନାନା ଦେଶ ନାନା କଥା ଦର୍ଶନେ ଶ୍ରବଣେ ।
କଛି ଅଛି ଅପତ୍ତି କ ।
ଯେ ପାଠ ଅଣାଇନ୍ତି ଅପଣା କଢକ । ୩୫ ।

ପୂର୍ବୁଁ ଜାଣିଥିଲ ପରା ହେବ ନୃତ୍ୟ ଗୀତ ।
ପାଲବଣ୍ଡା କଲ ନାହିଁ କପାଁ ନିଃସାରିତ ।
ଦେଉଥାନ୍ତ ଉପଦେଶ ।
ପ୍ରକାଶ୍ୟେ ଗୋପନେ ଅବା ଯାଇ ବାବୁ ପାଶ ।୩୬।
କିଛି କଲ ନାହିଁ, ବଡ଼ କର୍ତ୍ତବ୍ୟତା ତୃଟି ।
ପରେ ବହି ଲେଖି ଛପି ମିଛେ କଲ ଯାଟି ।
ଶିକ୍ଷା ଦେବାପାଇଁ ମତ ।
ନାଚପରେ କଲ ପରା ଚନ୍ଦାକାଶେ ଗତ ।୩୭।
ଅଚ୍ଛା, ଭାଇ କହ ନାହିଁ ଉଚିତ କରମ ।
ଭଦ୍ରଜନେ ନିନ୍ଦାକର ଅଟେ କି ଧରମ ।
ନିଜେ ଯାଇଥିଲ ପରା ।
ବିମୋହିତ ହୋଇଥିଲ ଦେଖି ମଥାଏଁରା ।୩୮।
କାରଣ ହୋଇଲ ଚକ୍ଷୁଶୂଳ କିସପାଇଁ ।
ମନ ଥିଲା ଯେବେ ଦେଖିବାର କାଶୀବାଈ ।
ଅଧୁନିକ ସମାଜରେ ।
ଏ ଗୀତ କି ଚଳନାହିଁ ତୁମ୍ଭ ଜାଣିମାରେ ।୩୯।

ବିବାହାଦି ମୃତ୍ୟୁ ଭର କାର୍ଯ୍ୟେ ଏ ପ୍ରଣାଳୀ ।
ତୁମ୍ଭ ଅମ୍ଭ ସ୍ଥଳେ ମଧ୍ୟ ଗଲାଣି ପ୍ରଚଳି ।
ଶ୍ରାଦ୍ଧ ଶୌଚ ଉପଲକ୍ଷେ ।
କାଗଜେ ନିମନ୍ତ୍ରିଛନ୍ତି ଲୋକେ ଲକ୍ଷେ ଲକ୍ଷେ ।୪୦।
ନିର୍ଦ୍ଦୋଷ ଆହ୍ଲାଦ ନୃତ୍ୟ ଦେଖିବାକାରଣ ।
ଯାନ ବନ ଡ୍ରଜନେ ହୋଇଲା ଅହ୍ୱାନ ।
ତେଣୁ ପଚାରୁଁ ତୁମ୍ଭଙ୍କୁ ।
ପାଇଥିଲ କି ନାରନ୍ତ ଯିବାର ସେଠାକୁ ।୪୧।
ବିନା ନିମନ୍ତ୍ରଣେ ଯିବା ହେଲା କି ଉଚିତ ।
ଯାଇଥିବ ଯେବେ ଭାଇ ହୋଇ ଉତ୍କଣ୍ଠିତ ।
ଏହା ନିୟମ ଲଙ୍ଘନ ।
ନୃପେ କହେ କଣ୍ଠବର, ଉତ୍ତର ପ୍ରଦାନ ।୪୨।
ବୃଥାରେ ମୁଁ ପ୍ରଶଂସିଲି ନଗେନ୍ଦ୍ର ବାବୁଙ୍କୁ ।
ଏଭଳି ବାତୁଳ କଥା ନ ଥଣ ମନକୁ ।
ମୁଁତ ନୁହଇ କଙ୍କର ।
ପ୍ରଶଂସା ନ କଲେ ଯେପେ କଣ୍ଠା ଯିବ ଶିର ।୪୩।

ଦେଖିଲି ଶୁଣିଲି ଯାହା ଲେଖିଲି ଗୀତରେ ।
କଷ୍ଟ କହେ ଦେଇ ନାହିଁ ସେ ବାବୁ ଚିତ୍ତରେ ।
ଏତେ ଯେ କଲା ଖରଚ ।
ସମସ୍ତଙ୍କ ପାଇଁ, ତାଙ୍କୁ ପଛରେ ନିନ୍ଦୁର । ୪୪ ।
ଦେଖିଥିଲ କହେ କେବେ କହେଛେ ଏ ନାଟ ।
ବାବୁ ଦେଖାଇଲେ, କୁସ୍ତା କଯାଁଇ ପ୍ରକଟ ।
ନିନ୍ଦା-ଅବଧାନ-ଗୁଟ ।
ସ୍ୱଜନ ଦଣ୍ଡ ବଣ କରୁଅଛି ଛଟ । ୪୫ ।
ଦଦ୍ରଜନେ ନିନ୍ଦା ନୀତି ନୁହେ ସାଧୁପଣ ।
ଦେଖିଥାନ୍ତି ଉଲ୍ଲ କଛ ବାବୁରେ ଅଗ୍ରଣୀ ।
ତେବେ ହୁଅନ୍ତା ଉଚିତ ।
ନିନ୍ଦାବାଦେ କରିବାର କାବ୍ୟ ପ୍ରକାଶିତ । ୪୬ ।
ଚିତ୍ତରେ କଷ୍ଟର ଦେଖ ଲେଖିଲି ବହୁତ ।
ପଣ୍ଡିତେ ଶୁଣାଇ ଦେନ ସତ କି ଅସତ ।
ଆସ ମିଳ ଯିବା ଆଜ ।
ଗାଜ ହେଲେ ଦୁଇପକ୍ଷ କି କରିବେ କାର୍ଯୀ । ୪୭ ।

—○ଃ○—